ଦୋଲଯାତ୍ରାର

ନୂଆ

# ହୋରିଗୀତ ।

ପ୍ରଣେତାଙ୍କ ଅନୁମତ୍ୟାନୁସାରେ

ଭୋଲାନାଥ ପୁସ୍ତକାଳୟ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



ପ୍ରାପ୍ତିସ୍ଥାନ

ଭୋଲାନାଥ ପୁସ୍ତକାଳୟ

ଚୌଧୁରୀବଜାର

କଟକ

୧୯୨୭

ମୂଲ୍ୟ ଟ ୦ /       ଦୁଇପଇସା ମାତ୍ର

ଦୋ ଳ ଯା ତ୍ରା ର

ନୂଆ

# ହୋରିଗୀତ ।



ସଖୀ ବଜେ କଦମ୍ବମୂଳେ—ଢଙ୍ଗେ ।

୧ । ହୋରିଅ ଆସ ହୋରିଖେଳରେ, ବୃନ୍ଦାବନ ଏ ବର୍ଷରେ । ପଦ । ସର୍ବେ ମିଳି ଆନନ୍ଦରେ, ଖେଳ ଖେଳିବା ଢଙ୍ଗରେ, ରଙ୍ଗିଆଙ୍କର ସଙ୍ଗରେ, ଭାଇ ସବୁ ଚିନ୍ତା ତେଜ ଦୂରେ ।୧। ଅତର ଗୋଲାପପାଣିରେ ଚନ୍ଦନ ଚୂଆ କର୍ପୂରରେ, ପିଚକାରି-ମାରଣରେ, ଭାଇ ମନ ବଳେ ଉନ୍ମାଦରେ । ୨ । ଅଭ୍ରକ ଅବିରେ ଧର, ଝଲେ ଝଲ କର ଦୂର, ଦର୍ଶିବ କପଟ ତୋର, ଭାଇ ପୂର୍ଣ୍ଣଚନ୍ଦ୍ରକିରଣରେ । ୩ । ଗୀତ ଗାଇ ଥେଇ ଥେଇ, ନାଚ କରତାଳି ଦେଇ, ବାଦ୍ୟ ଯନ୍ତ୍ରାଦି ବଜାଇ, ଭାଇ ଫୁଲରଜ-ରଜକଣରେ । ୪ । ଆଉ ଏ ସୁଖସମ୍ବନ୍ଧ, ମିଳିବ ନାହିଁ ନିଶ୍ଚୟ, ମଧୁ ସ୍ୱାମୀଙ୍କ ବୋଲେ ଭାୟ, ଭାଇ ନ କର ତୁମ୍ଭ ଡେରିରେ ।୫।



ଶ୍ୟାମ ଶିଖଣ୍ଡୀରାଗ—ଢଙ୍ଗେ ।

୨ । ତୋର ଦର୍ଶ କପଟ, ମୋହନ ରଙ୍ଗିଣିରେ କୁସୁମଶର । ପଦ । ସଖି ଆମ୍ଭମାନଙ୍କ ବକ୍ଷଦେଶରେ । ମାରିଲେ ପିଚକାରି ରଙ୍ଗପାଣିରେ ।୧। ପିତପଟ୍ଟଅ ଠିଆ ହୋଇଣ ଦମ୍ଭେ । ଉଡ଼ାଉଛନ୍ତି ଫଗୁ ଦେଖ ସରବେ । ୨ । କେତେ ଖେଳିବୁ ତାଙ୍କ ସଙ୍ଗରେ ଆଉ, ଗୃହେସ୍ୱ-ଖେଳେ ନଟୁଗୋଷ୍ଠ ତ ବନ୍ଧୁ । ୩ । ଦଗବଦଗ ଗୃହେଁ ହୁଅଇ ନାହିଁ, ହାରିଲୁ ଭାବେ ମଧୁସୂଦନ ସ୍ୱାମୀ । ୪ ।



କିଏ ଢାଳିଦେଲା ଲୋ ରଙ୍ଗ ପାଣିକି—ବୃତ୍ତେ

୩ । ନନ୍ଦଦ୍ୱାରେ ଆନନ୍ଦ ଉତ୍ସବ ଦେଖି, ସଖି ଫୁଟିଯାଏ ଆଖି । ପଦ । ଘରେ ମୋର ମନ, ହୁଏ ଛନ ଛନ, ନ ପାରେ ମୁଁ ଧୈର୍ଯ୍ୟ ରଖି ।୧। ଶାଶୁନଣନ୍ଦଙ୍କ; ଗଞ୍ଜଣା ଅନେକ, ନ ପାରନ୍ତି ମୋତେ ଦେଖି । ୨ । ଝାଂଜ ଘମାଘମ, ବାଦ୍ୟ ଝମାଝମ, ନୃତ୍ୟଗୀତେ ନମ୍ରୀ ଭୁଲି । ୩ । ରଙ୍ଗପାଣି ଭରି, ପିଚକାରୀ ଧରି, ଝର ଝର ପଡ଼େ ନାକି । ୪ । ଅଭ୍ରକ ଅବିର, ଉଡ଼େ ଗଗନର, ମଧୁ ସ୍ୱାମୀଁ ଯାଇ ଲେଖି । ୫ ।



୪ । ନଟନାଗର ବାଟରେ ହଟନାଟ କର ନା—ବୃତ୍ତ ।

ରଙ୍ଗନାଗରବର ରଙ୍ଗରେ ରଙ୍ଗ ପାଣି ଫିଙ୍ଗନା । ସଙ୍କେତବଳରେ ଶୀତେ ମନ୍ତ୍ର ଅରଯାଏ ଦେଖ ନା । ପଦ । ବରଞ୍ଚ ଫଗୁ ହେ ଫଗୁ ରଙ୍ଗରେ ସଙ୍ଗଭଙ୍ଗ ଯେବେ ନ ଘଟିପାରେ, କରଯୁଗଳ ଯୋଡ଼େ ତୁମ୍ଭରେ ହଟହଟା କର ନା, [ଶ୍ୟାମବନ୍ଧୁ ] ।୧। ତୁମ୍ଭଙ୍କ ମୋହର ନାହିଁ ପ୍ରତୀତ ସ୍ୱର୍ଣ୍ଣପିଚକାରୀ ରଖ ମୋ କଥା, ଶଠ ନଟନାଗର ଝଟତ, ମଠ ମଠ କର ନା ।୨। ଦକ୍ଷିଣୁ ବହଇ ଧୀର ସମୀର, ଚଞ୍ଚଳ ଚିତ୍ତ ହୁଅଇ ସ୍ଥିର କୁଞ୍ଜକାନନ-ପୁଷ୍ପ ନିକର ଫୁଟି ଦିଏ ବାସନା । ୩ । ଚାନ୍ଦରୂପାଥାଳୀ ପରାୟେ ପୁଣି, ଦଶେ ପୂର୍ଣ୍ଣଚନ୍ଦ୍ର ମୁରଲୀପାଣି, କେଜାଣି ଗଢ଼ିଛି କେ ବିନ୍ଧାଣୀ, ନିରେଖିଣ ଦେଖ ନା । ୪ । ଭୂମିରେ ତ ପଡ଼ିଅଛି ଅବିରଂ ତା ପରେ ଅଲେଖ ଦଶେ ସୁନ୍ଦର, ଶ୍ରୀମଧୁସୂଦନ ସ୍ୱାମୀଙ୍କ ଛାର, ପଦେ କରେ ପ୍ରାର୍ଥନା । (ଶ୍ୟାମବନ୍ଧୁ ) । ୫ ।



୬ । ଛୁଡ଼ ଛୁଡ଼ ନାଗର ପଣନ୍ତ ଫେର—ବୃତ୍ତ ।

ସଖେ, ଆଜ ଏ ହୋରିଖେଳ ଏତିକି, ପୁଣି ଖେଳିବା କାଲି ଆସି ଏଥିକି । ପଦ । ସଜାଡ଼ିଣ ସବୁ ରଖ ଯିବା ଯେ ଘରକୁ । ସଜାଅ ତୁମ୍ଭର ଗଳାରତନମାଳକୁ । ୧ । ଫଗୁରଙ୍ଗମାତରେ ବେଶ ବଦନ ଶରୀର ।

ଦେଖି ପିତାମାତା ହେବେ ରାଗେ ଜର ଜର । ୨ । କହନ୍ତେ ଖେଳିଲ ହୋରଖେଳ ଭଲ କଲ । ଯମୁନାରେ ଧୋଇହୋଇ କପଡ଼ା ନଇଲ । ୩ । ତୁମ୍ଭେ ଆଳୀମାନେ ମୁହିଁ ଗୋପସୁତ ମେଳେ । ଗ୍ୱଲ ଯିବା ଗାଡ଼ଧାଇବା ଯମୁନାର ଜଳେ । ୪ । ଘରେ ଫେରିଯାଇ ଭୁଞ୍ଜି ଶୋଇବା ସକଳେ । ମଧୁ ସ୍ୱାଇଁ ବୋଲେ କାଲି ଖେଳିବା ସକାଳେ

———

ନନ୍ଦଦ୍ୱାରେ ଆନନ୍ଦ ଉତ୍ସବ—ତ୍ରିପୁଟ ।

୧ ।ଦୋଳଯାତ୍ରା ଗୋଳ ଧୁଣିହିଁ ଲାଗିଲା । (ଯାହା ) ମାସେ ପୂର୍ବେ ହୋଇଥିଲା । ପଦ । ଏହି ବରଷରେ, ଘଟିଲା ଯୋଗରେ, ଫଗୁଣ ଦୁଇଟି ଭଲା । ୧ ।ଏପରି ହେବାର, ଅମ୍ଭମାନଙ୍କର, ନୟନ ଦେଖି ନ ଥିଲା ।୨। କେବଳ ଓଡ଼ିଆ, ହୋଇଣ ବଡ଼ିଆ; ଏହାକୁ ସାର କରିଲା । ୩ । ପୂର୍ବ ଅଧିକରେ, ଝାଁକଜମକରେ, ମାତ୍ର ଏଥର ଚଳିଲା । ୪ । ଗତବର୍ଷଦୋଳ, ପର ହେଲା ଗୋଳ, ମଧୁ ସୁଆଇଁ ଭାଷିଲା ॥

——*——

ରାଗ—ଝିଞ୍ଝିଟ । ତାଳ ମଧ୍ୟମାନ ।

୧ । ହୋର ଚଳିଲା

ଫଗୁଗଣ୍ଡି ଫଗୁଣରେ ଉଡ଼ିଲା । ପଦ ।

ଚୂଆ ଚନ୍ଦନ କର୍ପୂରେ, ଗୋଲାପ ଅତରଗାରେ, ପିଚକାମାରଣେ ମନ ବଳିଲା ॥ ତାଳମର୍ଦ୍ଦଳ କାହାଳି, ଘଣ୍ଟା ବଂଶୀ କରତାଳି,ନନ୍ଦର ପଖୌଜ ବେଲା ବାଜିଲା ।୨। ଗୋପାଳେ ଘଣ୍ଟି ଘାଗୃଡ଼ି, ଦୃଢ଼ରେ ଅଣ୍ଟାରେ ଭିଡ଼ି, ନାଟବାରେ ବସୁନ୍ଧରା ଥରିଲା ।୩। ଆଢ଼େଣୀ ତଲ୍ଲୀ ଛତ୍ର, ପତାକା ଫର୍ଦ୍ଦକା ମାତ୍ର, ଟେକାବନ୍ଧାଶିରବାସ ଉଡ଼ିଲା । ୪ । ବ୍ୟଞ୍ଜନ ଚାମର

* ୧୯୦୭ ସାଲରେ ଦୁଇଟି ଦୋଳଯାତ୍ରା ପଡ଼ିଥିଲା । ଦୁଇଥର ଯାକ ବଡ଼ ସୁନ୍ଦର ହୋଇ ଥିଲା ॥

ଧର, ବିମାନ ମଧ୍ୟେ ଶ୍ରୀହରି, ସେବିବାକୁ ଅତି ଭକ୍ତି ହୋଇଣ । ୫ । ଶ୍ରୀ ମଧୁସୂଦନ ସ୍ୱାଇଁ, ଶ୍ରୀ ମଧୁ ସୂଦନ ଧ୍ୟାଇ, ହୋରିଗୀତ ହରଷରେ ରଚିଲା । ୬ ।



୮ । ପ୍ରିୟା ରଖା ମୋତେ ବାଟେର ପୀୟୂଷ—ବୃତ୍ତେ

ଗୋରି, ହୋରି ଖେଳେ ଅସ ମୋ ପାଶ, ଯାଉଛି ତୋର ଝୀନବାସ । ପଦ । ଅଭ୍ରକ ଅମ୍ବର, ପଡ଼ଣ ବାସର, ହୋଇବ ବୃଥା, ନ ପାଅ ବ୍ୟଥା, ପରକାଶ ତୋର ଝଟକହାସ । ୧ । ତୁମ୍ଭ ତ ପ୍ରେମାଙ୍ଗୀ, କେଉଁ କଥା ଲାଗି, ନ ଅସୁ ପାଶେ, ଯୋଡ଼ାଇ ବାସେ ତୋର ଲପନଇନ୍ଦୁକୁ ସରସ ।୨। ବର୍ଷକର ଦିନ, ଉଭୟେ କି ଭିନ୍ନ କରୁଛୁ ଲାଜ, କାହା ଏ ବ୍ୟାଜ, ଆଜ ଗଜରାଜ ଗତି ନିରାଶ ॥ ୩ ॥ ନାହିଁ କର ନାହିଁ, କେତେ କି ସଜାଇ, ଅଛୁରେ ସହି, ଦେଖୁ ନା ରହି, ଏବେ ମଧୁସୂଦନ ସ୍ୱାଇଁ ଭାଷ ॥ ୪ ॥

୯ । ମନ ହେଉଛି ଆନନ୍ଦ ରବି ଦେଖି—ବୃତ୍ତେ

ଦୂତି, କିଏ ଲାଲପାଣି । ଲୁଚି ଲୁଚି ଦେଲା ମାରି ପିଚକାରେ ଟାଣି । ପଦ । ଶାଶୁ ନଣନ୍ଦ ଗଞ୍ଜଣା ଅପାରୁଁ ଅପାର । ବାସଭିଗାଟା ଢହନ୍ତିଗଲା ସାହାସ କାହାର ॥ ୧ ॥ ରଙ୍ଗବାସ ଦେଖି ମୋତେ କେତେ ଝିଙ୍ଗାସିବେ । କେତେ ନାରୀ ଅଟେ କେତେ ନିନ୍ଦାକୁ ରଚିବେ ॥ ଯେ ଯାହାକୁ ଡରୁଥାଏ କାଳେ ତାହା ଘଟେ । କୃଷ୍ଣପାଇଁ ମୋତେ ରଖି ଥିଆନ୍ତି ଅକଟେ ॥ ଡରି ଡରି ମରେ ମୋର ଦିନ ସରୁ ନାହିଁ । ମାରନ୍ତି ଛଅ ଗୋଇଠା ମୋର ଛଇ ଗୃହିଁ ॥ ୪ ॥ ବ୍ୟସ୍ତେ କହି ସେ କିଶୋରୀ ଯେନ ସହଚରୀ । ବାସେ ବାସ ପାଲଟିଲେ ମଧୁସ୍ୱାଙ୍କ ସୁରି ॥ ୫ ॥



୧୦ । ଅଖି ରହିଲା ଲଖି ସଖି ଶିଖୀଚୂଳରେ—ବୃତ୍ତ

ଚଢେ କାହିଁକି ମାନ କରୁ ବିମ୍ବଅଧରୀ । ପଦ । କଞ୍ଜନେତ୍ରେ ଫଗୁମୁଣ୍ଡି, ଅଙ୍କାତଟେର ଥିବ ପଡ଼ି, ଦୋଷ କର ନାହିଁ କହେ ଟାଡ଼ିକ ଧରି ॥ ୧ ॥ କନକଚମ୍ପକଗୋର, କନକପିଚ୍ଛିକାବାନ୍ଦ, ମାରଣେ ବାଧିଲା କିବା ତୋ ଅଙ୍ଗଶିରୀ ॥ ୨ ॥ ରଷ୍ଟୁ ନଲ ପୋଡ ମଥା, କହୁଁ ନାହୁଁ ମୋତେ କଥା, ମଥା ଟେକି କଥା କହ ସୁଦସ୍ଥା କର ॥ ୩ ॥ ହେଲେ ହେଉ ମୋର ଦୋଷ, ହସି ପାଶେ ବସି ତୋଷ, ତୋ କଙ୍କର ପଶ ମୁଁ ତୋ କରକୁ ଧରି ॥ ୪ ॥ ବର୍ଷ ମଧ୍ୟେ ଏ ସୁଦିନ, ତେଜ ତୁ ଗୁମାନ ଧନ, ଶ୍ରୀମଧୁସୂଦନ, ସ୍ୱାମି କହ ଗୁହାରି ॥ ୫ ॥

———

୧୧ । କନକ ଗୋରି ତୁ ମୋର କୋଳକୁ—ବୃତ୍ତ

ଝୁଲନ୍ତି ସମାଚିନ ହରି, ବୃନ୍ଦାବନରେ । ବୃନ୍ଦାବନଚନ୍ଦ୍ରମାଙ୍କୁ ଅଙ୍କେ ଧରି ଆନନ୍ଦରେ । ପଦ । ଏକଟେ ଚନ୍ଦ୍ର ଚନ୍ଦ୍ରମା, ଦିଶନ୍ତି କେଡ଼େ ସୁଷମା, ସଟେ କିବା ବିଷ୍ଣୁ ରମା, ଫଗୁଣେ ଫଗୁଖେଳରେ । ଗୋପୀ ଗୋପସୁତଗଣ, ନକ୍ଷତ୍ର ପ୍ରାୟେ ଶୋଭନ, ଆବର ଗୋପାଳଗଣ, କେ ଢାଳେ ଗୁମର ଶିରେ ॥ ୨ ॥ ମାରଇ କେ କରତାଳି, କେହୁ ବା ବ୍ୟଜନ ଗୁଳି, କେ ଫୁଟକି ହୁଳହୁଳି, ସିଞ୍ଚେ କେ ଦୁବାସ ନୀରେ ॥ ୩ ॥ ଅପରେ ବାଦ୍ୟ ବାଇ, ନାନାରଙ୍ଗେ ଗୀତ ଗାଇ ନାଚୁଛନ୍ତି ଥେଇ ଥେଇ, ତା ଧିନ ତାନମାନରେ ॥ ୪ ॥ ଦୁଟିବଟରେ ନଟବର, ହସ୍ତିପିଚକାରି କର, ଧେନ ଅଭ୍ରକ ଅବିର, ଫେଳନ୍ତି ରଙ୍ଗ ଜଳରେ ॥ ୫ ॥ ରାଧା—କୃଷ୍ଣ—ପାଦ ଧ୍ୟାଇ, ଶ୍ରୀମଧୁସୂଦନ ସ୍ୱାମି, ଭାଷଇ ଏ ଲୀଳା ସ୍ମାମୀ, ବହୁରାଜବାଜଦ୍ୱରେ ॥ ୬ ।

———

୧୨ । କାହ୍ନୁ ବରଜବାସୀ, ବଡ଼ ରହସ୍ୟ—ବୃତ୍ତ

କାହ୍ନୁ ଖେଳନ୍ତି ହୋରି, କୁଞ୍ଜବନରେ । ପଦ । ଚନ୍ଦନ କର୍ପୂର,

ବୁଅନ୍ତି ଅତର, ଗୋପୀଏ ପକାନ୍ତି ଗୋଳି କଡର ॥ ୧ ॥ ଗୋପୀ ଗୋପସୁତ, କରୁଥାନ୍ତି ନୃତ୍ୟ, ଗୀତ ଗାଇ ବାଦ୍ୟ ବାଇ ସ୍ୱରେ ॥ ୨ ॥ କାହ୍ନୁ ଫଗୁ ଧରି, ସଖୀଏ ଦ୍ୟନ୍ତି ମାରି, ଫିଙ୍ଗୁ ସେ କୃଷ୍ଣ ଯାଇଁ ଶୂନ୍ୟରେ ଧୂଳି ଆସି ପେଲି, ତାଙ୍କୁ ଦ୍ୟନ୍ତି ମାରି, ଦୌଡ଼ ସେ ଫିଙ୍ଗୁ କଳା-ମେଘରେ ॥ ୪ । ରାଧା ବାଧା ପାଇ, ବସିଲେ ଡୁଲାଇ, ତହୁଁ ସେ କାହ୍ନୁ ଲୋଟି ମାନରେ ॥ ୫ ॥ ବୁଝାନ୍ତେ ଶ୍ରୀପତି, ବୁଝିଲେ ଶ୍ରୀମତୀ, ମଧୁ ସ୍ୱାଇଁ ଜିହ୍ୱାରେ ହିକାରେ ॥ ୬ ॥

---

୧୩ । ପ୍ରାଣସଜନୀ ଗୋ ନେତ୍ରାନନ୍ଦପସାର—ବୃତ୍ତ

ଗୃହେରୀ ଖେଳିଲ ଗୋ ମାତ୍ର ମୁରଲୀଧର । କେଶେ ଲୁଟି ଗଲେ ଭ୍ରମ । ପଦ ।

ଲଳିତାବିଶାଖାଆଦି, ସର୍ବ ସଖୀ ହେଲ ବାଦୀ, ତେଣୁ ହାରି ଅନାଦି, ଛନ୍ତି କି ପର ॥ ୧ ॥ ମାୟାବୀ ସେତ ଅଟନ୍ତି, ମାୟା କି ସେ କରିଛନ୍ତି ତେଣୁ ଦେଖା ନ ଯାନ୍ତି, ଦୁଃଖପାଶୋର ॥ ୨ ॥ କଳାମେଘ ପ୍ରାୟେ ଦିଶେ, କଳାକୃଷ୍ଣ ହେବେ କି ସେ, ସେକ୍ଷଣି ପାଶେ ମିଶେ, ସେ ବଂଶୀ ଧର ॥ ୩ ॥ ସର୍ବେ ଆନନ୍ଦିତ ହେଲେ, ପୁଣି ଖେଳରେ ମାତିଲେ, ମଧୁ ସ୍ୱାଇଁ କହିଲେ, ରାଧା ତତ୍ପର ॥ ୪ ॥

---

୧୪ । ଆଉ କି ଶ୍ୟାମ ଆସିବେ ସଖୀ ରେ ସନ୍ତାପକୁ—ବୃତ୍ତ ।

ଏକାଳେ ଶ୍ୟାମ ଆସିବେ ସଖୀ, ଏ ଦୋଳି ଖେଳ ଖେଳିବେ । ପଦ ।

ରଙ୍ଗଜଳରେ ପିଚକା ମାରି ଫଗୁଗୁଣ୍ଡି ଫିଙ୍ଗି ଲୁଟିବେ । ଭୃଙ୍ଗଦାଶରେ ଭିଡ଼ ହାସ୍ୟରେ ସର୍ବ ମୁଖେ ଫଗୁ ବୋଳିବେ ॥ ୧ ॥ ଆମ୍ଭମାନଙ୍କ କରରେ କର ଧରି ତା ନା ନାନା ନାଚିବେ । ରସସାଗର ହୋଇ ଆଗର ପରିହାସକଥା ଭାଷିବେ ॥ ୨ ॥ କୁଙ୍କୁମ ଫିଙ୍ଗି ହଟନାଗର ନଟହଟା କେତେ କରିବେ ॥ ଲାଜସରମ ଆଜ ନ କର ଆମ୍ଭମାନ-

ଙ୍କର ହାଜିବେ । ୩ । ଯାହା ଦେଖିବାର ହେଉ ପଛକେ ବାଙ୍କଚୂଳିଆ ତ ଆସିବେ । ଡାକିଛି ମଧୁସୂଦନ ସ୍ୱାଇଁ ଦୁଗ୍ଧ-ଦଧି-ଘୃତ ଧାଇବେ ।୪।

———○———

( ଟପ୍ପା ) ବଙ୍ଗଳା ।

୧୫—ହରବର ନ କର ନାଗର—ଦୁରନ୍ତେ ।

ରାଧା ସୁନ୍ଦରୀ ଶ୍ରୀ କୃଷ୍ଣ ସଙ୍ଗେ

ହୋରି ଖେଳିତେଛେନ୍ ରସରଙ୍ଗେ । ପଦ ।

ପଞ୍ଚସୁରଭିତେ ରଞ୍ଜିତ କୁଞ୍ଜ, ପ୍ରସ୍ଫୁଟିତ ଲତାପୁଷ୍ପପୁଞ୍ଜ । ଗୁନୁ ଗୁନୁ କରତେଛେନ୍ ଭୃଙ୍ଗେ । ୧ । କୃଷ୍ଣ ଖେଳିତେଛେନ୍ ପିଚ୍‌କାରୀତେ, ବାଜତେଛେ ଚନ୍ଦ୍ରାବଳୀଗାତ୍ରେ । ଗୋପୀକାଗଣ ନାଚିତେଛେ ରଙ୍ଗେ ॥ ଲକ୍ଷ୍ୟ କୁଙ୍କୁମ ରାଧା ଶ୍ରୀକୃଷ୍ଣେ, ଫେଲିତେଛେନ୍ ଯେ ଅଙ୍ଗେର ହୃଷ୍ଟେ । ମଧୁବଲେ ବାଜତେଛେ ଅଙ୍ଗେ ॥ ୩ ॥

———○———

୧୬ ( ଟପ୍ପା ) ହିନ୍ଦୀ ।

ଶ୍ୟାମ ଅଭ୍ ହୋରି ଖେଲୋଙ୍ଗି ତୋମାର ସାଥ୍ । ପଦ । ଶୁନୋ ଶୁନୋ ବଂଶୀଧାରୀ ତୁମ୍ ଖେଲୋ ପିଚକାରୀ, ମେ ଖେଲୋଙ୍ଗି କୁଙ୍କୁମା କରେ ଏ ବାତ୍ । ୨ । ଦୋନୋ ମିଲେ ଲାଲେ ଲାଲ, କର୍ ଦେଏଙ୍ଗେ ନନ୍ଦଲାଲ, ଯେତା ହୁଆଁ ସବକେ ମଧୁ ଗାଏ ଗୀତ ॥ ୨ ॥

—※—

ଦୋଲଯାତ୍ରାର ନୂଆ ହୋରଗୀତ ସମ୍ପୂର୍ଣ୍ଣ ॥



# ଲଉଡି ଖେଳ ।

ପହିଲି ବାଡ଼ି ବୁଲଣି—ରେ ରେ ରେ ରେ ସନ୍ଧାକୁ ସନ୍ଧା ଦେଇ, ବାନ୍ଧାକୁ ବାନ୍ଧା ଦେଇ, ଅଣ୍ଟା ହଲାଇ, ଗୁଣ୍ଡ ଫୁଲାଇ, ଯେନ୍ତ ଘୋଡ ସେହିଠି ଥାଇ, ମୁଠା ଦମ୍ଭକରି, ଅଧିବୁ ମୋର ଜିଉ ଯାକିଯୁକ୍ତ ହୋଇ, ଟେକଉଁଠି ରାଧାକୃଷ୍ଣ ଯୁଗଳ ହେବେ ଜିଉ

ଦୁସର ଖେଳଡାକ—ଡାଲ ମାର, ମଣ୍ଡା ମାର, ବାଣ୍ଟ ମାର ଶିକା ।

ଫେର—ଡାଲ କେ ଡାଲ ଏ ।

ତିସର ଖେଳଡାକ—ରେ ରେ ରେ ଲାଗିଲା, ସିରାଟ ଏ, ପାଟ ଏ, ବାଣ୍ଟ ଏ ଶିକ ଏ ।

ଫେର—ଡାଲ ଏ, ପାଠ ଏ, ବାଣ୍ଟ ଏ, ଶିକ ଏ ।

ଚୌସର ଖେଳଡାକ—ରେ ରେ ରେ ଲାଗିଲା; ସିରାଟ ଏ, ବାଠ ଏ. ବାଣ୍ଟ ଏ, ଶିକ ଏ ।

ଫେର—ଡାଲ ଏ, ପାଠ ଏ, ବାଣ୍ଟ ଏ, ଶିକ ଏ ।

ପଞ୍ଚମ ଖେଳଡାକ—ରେ ରେ ରେ ଲାଗିଲା, ଦେ ଛୁଡ଼, ନେ ଛୁଡ଼, ଛୁଟ ବେଛୁଟ, ଓଲଟ ପାଲଟ, କଞ୍ଚୀ କୋଲପ, ବାଡ ବାଜଲ ଶୁଙ୍ଘ ପାଠ୍

ଫେର—ଦୁସର ଛୁଟ୍ ଏ ।

ଷଷ୍ଠ ଖେଳଡାକ—ରେ ରେ ରେ ଲାଗିଲା, ଛୁଟ୍ କେ ଛୁଟ କୋଛୁଟ ଏ ପାଟ ଏ, ବାଣ୍ଟଏ, ଶିକ ଏ ।

ଫେରା—ଦୁସର ଛୁଟ ଏ, ପାଠ୍ ଏ, ବାଣ୍ଟ ଏ ଶିକ ଏ ।



## ପଗ୍ଚରଣ ।

କଜ୍ଜ୍ୱଳ ଯେ ଝଳମଳ ତାଳମ୍ବର ହୂଡି
କିଏ ଦେଲା କଜ୍ଜ୍ୱଳ ହୋ କେଉଁ ସେ ଯୁବତୀ ॥
ପୋଛି ପକା କଜ୍ଜ୍ୱଳ ହୋ ରଞ୍ଜି ଦେବା ତୋତେ
କଳା-ଆଦ୍ୟ ଜନ୍ମକଥା କହିଦେବ, ମୋତେ ॥
ଯେବେ କଳା ଜନ୍ମକଥା ନ ପାରିବ କହି
ତୁମ୍ଭ ନୟନୁଁ କଜ୍ଜ୍ୱଳ ରଖିବ ଛଡ଼ାଇ ॥

## ଉତ୍ତର ।

ପର୍ବତ ଶିଖରେ ସର୍ଙ୍ଗି ଦୈତ୍ୟ ଏକ ଥିଲା
ତା ଭିରଯା ତନପାଣି କଳା ପାରିଥିଲା ॥
ପାଣିକର କଳା ସେ ଗଙ୍ଗାକୁ ଦାନକଲା
ପାଣିକର କଳା ସେ ଯେ ଉଇ ଖୁଆଇଲା ॥
ଆନ ଏକ ପାଣିକଳା ନୟନେ ରଞ୍ଜିଲା
ତାହାଠାରୁ ଏହୁ କଳା ଜନମ ଲଭିଲା
କଳାର ଜନମ କଥା କହିଦେଲୁ ଅମ୍ଭେ
ଏବେ ବାଟ ଛାଡ଼ିଦିଅ ଯାଉଅଛୁଁ ସର୍ବେ ।




କଟକ ଗୌରୀଶଙ୍କର ପ୍ରେସରେ ଶ୍ରୀ ଅଶ୍ୱିନୀକୁମାର ଘୋଷଙ୍କଦ୍ୱାରା
ମୁଦ୍ରିତ ୧୯୨୭

# ବିଜ୍ଞାପନ

## ସଙ୍ଗୀତ ସଜଙ୍ଗୁଲହାର ୧ମ

ମୂଲ୍ୟ ଗୃରଅଣା ମାତ୍ର ।

## ସଙ୍ଗୀତ ସଜଙ୍ଗୁଲହାର ୨ୟ

ମୂଲ୍ୟ ତିନିଅଣା ମାତ୍ର

## ଥିଏଟର ସଙ୍ଗୀତ ।

ମୂଲ୍ୟ ଦୁଇଅଣା ମାତ୍ର

## ରୋହିଣୀ ଉପନ୍ୟାସ

ମୂଲ୍ୟ ତିନିଅଣା ମାତ୍ର

## ସାଧବସତିକନ୍ୟା ସତିବ୍ରତ

ମୂଲ୍ୟ ଗୃରଅଣା ମାତ୍ର

## ବୈଷ୍ଣବ ତତ୍ତ୍ୱ ଚନ୍ଦ୍ରିକା

ମୂଲ୍ୟ ଏକଅଣା ମାତ୍ର

ଏ

ଚୌଧୁରୀବଜାର
କଟକ । } ଭୋଲାନାଥ ପୁସ୍ତକାଳୟ